**ଅଶ୍ୱୀକରଣ**



**ରିସର୍ଚ୍ଚ-**ସେଣ୍ଟର ଫର ପଲିସି ରିସର୍ଚ୍ଚ (ସିପିଆର)-ନମତି ଏନଭାଇରନ୍‌ମେଣ୍ଟ ଜଷ୍ଟିସ୍ ପ୍ରୋଗ୍ରାମ
**କଭର ଫୋଟ-**ବାପି ଗୁଜରାଟ, ଆବ୍ରେ ଢାଦେ
**ରୂପରେଖ-**ରେଏ ଜାଚରିହା
**ମୂଦ୍ରାଣ -** ପ୍ରିଣ୍ଟ ଫୋର୍ସ

**ଏହି ରିସର୍ଚ୍ଚ କାମ ପାଇଁ ଦୂଲେପ ମିଠାଇ ନେଚର କନ୍‌ଜରଭେସନ୍ ଟ୍ରଷ୍ଟ (ଡ଼ି.ଏମ. ଏନ.ସି.ଟି)**

# 01 ଭୂଜଳ ଉତ୍ତୋଳନ ସମ୍ପର୍କୀତ ନିୟନ୍ତ୍ରଣ

ସାମୟିକ କିମ୍ବା ଅନିର୍ଦ୍ଦିଷ୍ଟକାଳ ପାଇଁ ଭୂମିରୁ ଜଳ ସଂଗ୍ରହକୁ ଭୂଜଳ ଉତ୍ତୋଳନ କୁହାଯାଏ ।

## ଭୂଜଳ ଉତ୍ତୋଳନ ପାଇଁ ଅନୁମତି ନେବା ଆବଶ୍ୟକ କି?

ଭୂଜଳ ଉତ୍ତୋଳନ କରୁଥିବା ସବୁ ଶିଳ୍ପ କାରଖାନା ନୋଅବ୍‌ଜେକ୍‌ସନ୍ ସାର୍ଟିଫିକେଟ୍ ନେବା ବାଧ୍ୟତାମୂଳକ ଅଟେ ।

## କେଉଁ କେଉଁ ପ୍ରତିଷ୍ଠାନକୁ ପ୍ରଦୂଷଣ ପର୍ଯ୍ୟବେକ୍ଷଣ ପାଇଁ ଦାୟିତ୍ୱ ପ୍ରଦାନ କରାଯାଇଅଛି?

| | |
|---|---|
| **କେନ୍ଦ୍ର** | • କେନ୍ଦ୍ରୀୟ ଭୂଜଳ କର୍ତ୍ତୃପକ୍ଷ, ଦିଲ୍ଲୀ |
| **ରାଜ୍ୟ** | • କେନ୍ଦ୍ରୀୟ ଭୂଜଳ ବୋର୍ଡ (ସିଜିଡବ୍ଲୁବି) ଆଞ୍ଚଳିକ କାର୍ଯ୍ୟାଳୟ ଭୁବନେଶ୍ୱର, ଓଡ଼ିଶା ଭୂଜଳ କର୍ତ୍ତୃପକ୍ଷ, ରାୟପୁର ଠାରେ ଅବସ୍ଥିତ ସିଜିଡବ୍ଲୁବିର ଆଞ୍ଚଳିକ କାର୍ଯ୍ୟାଳୟ, ଅହମଦାବାଦ୍ ଠାରେ ଅବସ୍ଥିତ ସିଜିଡବ୍ଲୁବିର ଆଞ୍ଚଳିକ କାର୍ଯ୍ୟାଳୟ |

## ଭୂଜଳ ଉତ୍ତୋଳନ ନିୟନ୍ତ୍ରଣ ପାଇଁ ଅଞ୍ଚଳର ବିଭାଗୀକରଣ କିପରି କରାଯାଏ?

କେନ୍ଦ୍ରୀୟ ଭୂଜଳ କର୍ତ୍ତୃପକ୍ଷ ୧୬୨ଟି ଅଞ୍ଚଳକୁ ବିଜ୍ଞାପିତ ଅଞ୍ଚଳ (ନୋଟିଫାଏଡ୍ ଏରିଆ) ହିସାବରେ ଚିହ୍ନିତ କରିଛନ୍ତି ବିଜ୍ଞାପିତ ଅଞ୍ଚଳ ବ୍ୟତିରେକେ ଅନ୍ୟ ସମସ୍ତ ଅଞ୍ଚଳକୁ ଅଣ ବିଜ୍ଞାପିତ ଅଞ୍ଚଳ (ନନ୍-ନୋଟିଫାଏଡ୍ ଏରିଆ) ବୋଲି କୁହାଯାଇଛି ଏହି ବାବଦରେ କେନ୍ଦ୍ରୀୟ ଭୂଜଳ କର୍ତ୍ତୃପକ୍ଷ ୪ ପ୍ରକାର ଅଞ୍ଚଳ ଚିହ୍ନିତ କରିଛନ୍ତି

**ନିରାପଦ ଅଞ୍ଚଳ-** ୪୫୮୦ ନିରାପଦ ଏକକ (ୟୁନିଟ୍)

**ସଙ୍କଟାପର୍ଣ୍ଣ ଅଞ୍ଚଳ-** ୬୯୭ ଆଂଶିକ ସଙ୍କଟାପର୍ଣ୍ଣ ଏକକ

**ସଙ୍କଟାପର୍ଣ୍ଣ ଅଞ୍ଚଳ-** ୨୧୭ ସଙ୍କଟାପର୍ଣ୍ଣ ଏକକ

**ଅତ୍ୟଧିକ ଶୋଷିତ ଅଞ୍ଚଳ-** ୧୦୭୧ ଅତ୍ୟଧିକ ଶୋଷିତ ଏକକ

# ନୋ-ଅବଜେକସନ ସାର୍ଟିଫିକେଟ୍ କିଏ ପ୍ରଦାନ କରିଥାନ୍ତି?

ବିଜ୍ଞାପିତ ଅଞ୍ଚଳରେ ନୋ-ଅବ୍‌ଜେକ୍‌ସନ୍ ସାର୍ଟିଫିକେଟ୍ ବାବଦରେ ପଦକ୍ଷେପ ନେବା ପାଇଁ କ୍ଷମତାପ୍ରାପ୍ତ ଅଧିକାରୀ ନିଯୁକ୍ତି କରାଯାଇଥାଏ । ଏହି କ୍ଷମତାପ୍ରାପ୍ତ ଅଧିକାରୀ ମାନେ ହେଉଛନ୍ତି -

- ଡେପୁଟି କମିଶନର/ ଜିଲ୍ଲା ମାଜିଷ୍ଟ୍ରେଟ୍/ ଜିଲ୍ଲା କଲେକ୍‌ଟର ପ୍ରାସାଶନିକ ବ୍ଲକ କିମ୍ବା ତାଲୁକରେ
- ପୌରାଞ୍ଚଳରେ ପୌରାପାଳିକା ମୁଖ୍ୟ

ଧାତବ ଲବଣ!

ଉପଦେଷ୍ଟା ମଣ୍ଡଳୀ (ଆଡ୍‌ଭାଇଜରି କମିଟି) ଜିଲ୍ଲା ପ୍ରଶାସନିକ ମୁଖ୍ୟଙ୍କୁ ସହାୟତା ପ୍ରଦାନ କରିଥାନ୍ତି, କ୍ଷମତାପ୍ରାପ୍ତ ଅଧିକାରୀ ଉପଦେଷ୍ଟା ମଣ୍ଡଳୀ ସହ ପରାମର୍ଶ କରି ଭୂଜଳ ଉତ୍ତୋଳନ ପାଇଁ ଅନୁମତି ପ୍ରଦାନ କରିଥାନ୍ତି ।

ପ୍ରଥାନୁଯାୟୀ ଅଣ- ବିଜ୍ଞାପିତ ଅଞ୍ଚଳରେ ଜିଲ୍ଲା କଲେକ୍‌ଟର ନୋ- ଅବ୍‌ଜେକ୍‌ସନ୍ ସାର୍ଟିଫିକେଟ୍ ପ୍ରଦାନ କରିଥାନ୍ତି ।

# ବିଜ୍ଞାପିତ ଅଞ୍ଚଳରେ ଭୂଜଳ ଉତ୍ତୋଳନ ପାଇଁ କାହାକୁ ଓ କେଉଁ ପରିସ୍ଥିତିରେ ଅନୁମତି ପ୍ରଦାନ କରାଯାଏ?

ଯେଉଁଠାରେ ସର୍ବସାଧାରଣ ଜଳ ଯୋଗାଣ ବ୍ୟବସ୍ଥା ଉପଲବ୍ଧ ନଥାଏ ସେଠାରେ ଘରୋଇ ବ୍ୟବହାର କିମ୍ବା ବ୍ୟକ୍ତିଗତ ଘରୋଇ ବ୍ୟବହାର ଛଡ଼ା ଅନ୍ୟାନ୍ୟ କ୍ଷେତ୍ରରେ ଜଳ ବ୍ୟବହାର ପାଇଁ ଅନୁମତି ପ୍ରଦାନ କରାଯାଇଥାଏ ।

ବିଜ୍ଞାପିତ ଅଞ୍ଚଳରେ ଘରୋଇ ବ୍ୟବହାର ବ୍ୟତିରେକେ ଅନ୍ୟାନ୍ୟ କ୍ଷେତ ମଧ୍ୟରେ ୨୫ କିସମର ଭିତ୍ତିଭୂମି ପ୍ରକଳ୍ପକୁ ଅନ୍ତର୍ଭୁକ୍ତ କରାଯାଇଅଛି । ଆବାସିକ ଆପାର୍ଟମେଣ୍ଟ, ଆବାସିକ ଛୋଟ ସହର, ବ୍ୟବସାୟିକ ପ୍ଲାଜା, ମଲ୍ ଏବଂ ମଲ୍‌ଟିପ୍ଲେକ୍ସ, ଡ଼ାକ୍ତରଖାନା, କାର୍ଯ୍ୟାଳୟ, ବିଦ୍ୟାଳୟ, ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ଚିତ୍ତବିନୋଦନ ଆବାସ କେନ୍ଦ୍ର, ହୋଟେଲ୍, ଆବାସିକ ଛୁଟିକାଟିବା ଭବନ/ ଅତିଥିଭବନ, ଶିଳ୍ପାଞ୍ଚଳ (ଅଣଶିଳ୍ପ ବ୍ୟବହାର), ସ୍ୱତନ୍ତ୍ର ଅର୍ଥନୀତିକ ଅଞ୍ଚଳ (ଅଣ ଶିଳ୍ପ ବ୍ୟବହାର), ଆଡମ୍ବରପୂର୍ଣ୍ଣ ଭୋଜନ ସ୍ଥଳ, ମେଟ୍ରୋଷ୍ଟେସନ, ରେଳଷ୍ଟେସନ, ବସଡିପୋ, ବିମାନବନ୍ଦର, ସାମୁଦ୍ରିକ ବନ୍ଦର, ରାଜ୍ୟପଥ ଭିତ୍ତିଭୂମି, ଅଗ୍ନି ନିର୍ବାପକ କେନ୍ଦ୍ର, ମାଲଗୋଦାମ, ସୂଚନା ପ୍ରଯୁକ୍ତି ବିଦ୍ୟା ପାଇଁ ଉଦ୍ଦିଷ୍ଟ କୋଠା (ଆଇଟି କମ୍ପ୍ଲେକ୍ସ), ସେବା ଓ ଯନ୍ତ୍ରପାତି ଯୋଗାଣ ଇତ୍ୟାଦିର ବ୍ୟବସ୍ଥାଗତ କାର୍ଯ୍ୟ (ଲଜିଷ୍ଟିକ୍‌ସ୍) ଏବଂ ଜାହାଜ ବା ବିମାନର ଦ୍ୱାରା ମାଲ୍ ପରିବହନ କାର୍ଯ୍ୟ ଏହାର ଅନ୍ତର୍ଭୁକ୍ତ ।

# କାଳକାରଖାନାକୁ ଭୂଜଳ ଉତ୍ତୋଳନ ପାଇଁ କେଉଁ ସର୍ତ୍ତାବଳୀ ପାଳନ କରିବାକୁ ହୁଏ?

- କେତେ ପରିମାଣର ଭୂଜଳ ଅପ୍ରାକୃତିକ ପଦ୍ଧତିରେ ପୁନଃଭରଣା କରାଯିବ ସର୍ମ୍ପକୀୟ ସର୍ତ୍ତ
- ସମୟ ଅବଧି ଭିତ୍ତିକ ବିବରଣୀ ପ୍ରଦାନ ଓ କାହାକୁ ବିବରଣୀ ପ୍ରଦାନ କରାଯିବ ସେ ସମ୍ବନ୍ଧୀୟ ସର୍ତ୍ତ
- ଜଳର ପୁନଃ ବ୍ୟବହାର ଓ ଏହାକୁ ପୁନର୍ବ୍ୟବହାର ଉପଯୋଗୀ କରିବା ସମ୍ବନ୍ଧୀୟ ସର୍ତ୍ତ

# କେଉଁ କେଉଁ କିସମର ଶିଳ୍ପ କାରଖାନା ଜଳର ବହୁଳ ବ୍ୟବହାରକାରୀ

ବୋତଲ ପାନୀୟ ଜଳ, ଧାତବ ଲବଣ ଥିବା ପିଇବା ପାଣି କାରଖାନା (ମିନେରାଲ୍ ୱାଟର ପ୍ଲାଣ୍ଟ) ଚମଡ଼ା କାରଖାନା, ମଦ କାରଖାନା, ମୃଦୁପାନୀୟ ପ୍ରସ୍ତୁତି କାରଖାନା, କାଗଜ ଓ ମଣ୍ଡ ତିଆରି କାରଖାନା, ସାର କାରଖାନା, ଲୁଗାରଙ୍ଗ କାରଖାନା, ଲୁଗା ଛାପା କାରଖାନା, ଲୁଗାବୁଣା କାରଖାନା, ଚିନି କାରଖାନା, ଦୁଗ୍ଧ ଜାତୀୟ ଦ୍ରବ୍ୟ କାରଖାନା, ଜଳ କ୍ରୀଡ଼ା ଓ ଆମୋଦପ୍ରମୋଦ କେନ୍ଦ୍ର ।

ଅତ୍ୟଧିକ ଶୋଷିତ ଅଞ୍ଚଳରେ ଜଳର ବହୁଳ ବ୍ୟବହାର କିସମର ଶିଳ୍ପ ପ୍ରତିଷ୍ଠା ପାଇଁ ଅନୁମତି ପ୍ରଦାନ କରାଯାଇନଥାଏ ।

# ଜଳ ପ୍ରଦୂଷଣକୁ ପ୍ରତିହତ କରିବା ପାଇଁ କିଭଳି ଆଇନର ବ୍ୟବହାର କରାଯାଏ?

ପୂର୍ବୋକ୍ତ ଅନୁଚ୍ଛେଦରେ ଜଳ ପ୍ରଦୂଷଣ ଆଇନ୍‌କୁ ବ୍ୟବହାର କରି କିପରି ପ୍ରତିହତ କରାଯାଇପାରେ ସେ ସର୍ବରେ ଆଲୋଚନା କରାଯାଇଅଛି । କିନ୍ତୁ ଆଇନ୍ ବିଷୟରେ ଜ୍ଞାନ ଯଥେଷ୍ଟ ନୁହେଁ । ଆଇନ୍‌କୁ ଯଥାର୍ଥରେ ବ୍ୟବହାର କରାନଗଲେ, ଫଳପ୍ରଦ ପ୍ରତିକାର ହାସଲ କରିବା କଷ୍ଟକର । ଏହି ଅନୁଚ୍ଛେଦରେ ଆଇନ୍‌କୁ କିପରି ଠିକ୍ ରୂପେ ବ୍ୟବହାର କରାଯାଇପାରିବ ସେ ସର୍ବରେ ଆଲୋଚନା କରାଯାଇଅଛି ।



## I.ପ୍ରମାଣ ସଂଗ୍ରହ
### (ଦଲିଲ୍/ ନଥିପତ୍ର)

| ଦଲିଲ୍‌ର ପ୍ରକାର | କେଉଁଠାରେ ଉପଲବ୍ଧ | କଣ ପାଇଁ ବ୍ୟବହାର କରାଯାଇପାରେ |
|---|---|---|
| ନୋ-ଅବ୍‌ଜେକ୍ସନ୍ ସାର୍ଟିଫିକେଟ | କେନ୍ଦ୍ରୀୟ ଭୂଜଳ କର୍ତ୍ତୃପକ୍ଷ, ଜିଲ୍ଲା କଲେକ୍ଟରଙ୍କର କାର୍ଯ୍ୟାଳୟ | • ଭୂଜଳ ଉତ୍ତୋଳନ ପାଇଁ ଅନୁମତି ନିଆଯାଇଛି କି ନାହିଁ |
| ଭୂଜଳ ଉତ୍ତୋଳନ ସର୍କୀତ ପର୍ଯ୍ୟବେକ୍ଷଣ ଓ ସର୍ତ୍ତପାଳନ ବିବରଣୀ | କେନ୍ଦ୍ରୀୟ ଭୂଜଳ କର୍ତ୍ତୃପକ୍ଷ, କେନ୍ଦ୍ରୀୟ ଭୂଜଳ ବୋର୍ଡ | • ଭୂଜଳର ମାତ୍ରା ଓ ଉତ୍କର୍ଷର ନିରୀକ୍ଷଣ |
| ପରିବେଶ ମଞ୍ଜୁରୀ | କାଟାଗୋରୀ-A ପରିବେଶ ଜଙ୍ଗଲ ଓ ଜଳବାୟୁ ପରିବର୍ତ୍ତନ ମନ୍ତ୍ରଣାଳୟ | • ଭୂଜଳ ବ୍ୟବହାର ସର୍କୀତ ସର୍ତ୍ତଗୁଡ଼ିକ ବାବଦରେ ଉଲ୍ଲେଖ ଥାଏ<br>• ସର୍ତ୍ତଗୁଡ଼ିକୁ ପଢ଼ି ଜାଣିବା ଓ ଏହାର ଅନୁପାଳନ ହେଉଛି କି ନାହିଁ ତାହା ନିରୀକ୍ଷଣ କରିବାରେ ସହାୟକ ହୁଏ |
| | କାଟାଗୋରୀ-B1 ରାଜ୍ୟସ୍ତରୀୟ ପରିବେଶ ପ୍ରଭାବ ଆକଳନ କର୍ତ୍ତୃପକ୍ଷ (SEIAA) | |
| | କାଟାଗୋରୀ-B2 ଜିଲ୍ଲାସ୍ତରୀୟ ପରିବେଶ ପ୍ରଭାବ ଆକଳନ କର୍ତ୍ତୃପକ୍ଷ (DEIAA) | |
| | ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ ପାଖରେ ମଧ୍ୟ ଉପଲବ୍ଧ | |
| ପ୍ରକଳ୍ପ ପ୍ରତିଷ୍ଠା ପାଇଁ ସମ୍ମତି ପ୍ରକଳ୍ପ କାର୍ଯ୍ୟକାରୀ କରିବା ପାଇଁ ସମ୍ମତି | ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ | • ନିର୍ଗମନର ସ୍ଥଳ/ ପଥ ଚିହ୍ନଟୀକରଣ<br>• କେଉଁ କିସମର ଆବର୍ଜନା (ପ୍ରକାର ଓ ଏହାର ସମାହାର) ନିର୍ଗମନ ହେଉଛି<br>• ଭୂଜଳ ବ୍ୟବହାର ଓ ନିର୍ଗମନ ସଂକ୍ରାନ୍ତୀୟ ସବିଶେଷ ତଥ୍ୟ<br>• ଭୂଜଳ ପ୍ରଦୂଷିତ ହେଉଥିବା ସ୍ଥଳେ ସର୍ତ୍ତାବଳୀ ସର୍କୀୟ ଜ୍ଞାନ/ ସୂଚନା ବିଶେଷ ଆବଶ୍ୟକ । |

| ଦଲିଲ୍‌ର ପ୍ରକାର | କେଉଁଠାରେ ଉପଲବ୍ଧ | କଣ ପାଇଁ ବ୍ୟବହାର କରାଯାଇପାରେ |
|---|---|---|
| ପରିବେଶ ମଞ୍ଜୁରୀ ସର୍ଭିତ ପର୍ଯ୍ୟବେକ୍ଷଣ ଓ ସର୍ତ୍ତପାଳନ ରିପୋର୍ଟ | ପରିବେଶ ଜଙ୍ଗଲ ଓ ଜଳବାୟୁ ପରିବର୍ତ୍ତନ ମନ୍ତ୍ରଣାଳୟର ଆଞ୍ଚଳିକ କାର୍ଯ୍ୟାଳୟ | • ଜଳ ନିର୍ଗମନ ସମ୍ବନ୍ଧୀୟ ସର୍ତ୍ତଗୁଡ଼ିକର ପାଳନ ପୂର୍ବରୁ ହୋଇଛି କି ନାହିଁ ଜାଣିବା ପାଇଁ ବିଶେଷ ଉପଯୋଗୀ |
| ପୂର୍ବରୁ ଜାରି କରାଯାଇଥିବା କାରଣ ଦର୍ଶାଅ, ପ୍ରକଳ୍ପ ବନ୍ଦ ନିର୍ଦ୍ଦେଶନାମା | ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ | • ପୂର୍ବରୁ ସର୍ତ୍ତ ଅନୁପାଳନ ବିଷୟକ କାନୀ ବିରୁଦ୍ଧରେ କୌଣସି ବିଜ୍ଞପ୍ତି ଜାରି ହୋଇଛି କି ନାହିଁ ଜାଣିବାରେ ବିଶେଷ ଉପଯୋଗୀ |



## ଖ) ଫଟୋଗ୍ରାଫ ଓ ଭିଡ଼ିଓ କ୍ଲିପ

କ୍ଷେତ୍ରର ବାସ୍ତବିକ ସ୍ଥିତିକୁ ଚିତ୍ରଣ କରିବା ପାଇଁ ଫଟୋଗ୍ରାଫ୍ ଆଧାରିତ ପ୍ରମାଣ ସଦାସର୍ବଦା ଆବଶ୍ୟକ । କେଉଁ ତାରିଖରେ ଓ କେଉଁ ସମୟରେ ଫଟୋ ଉଠାଯାଇଅଛି ବା ଭିଡ଼ିଓ ଚିତ୍ର ଉତ୍ତୋଳନ କରାଯାଇଅଛି ତାହା ଲେଖି ରଖିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।



## ଗ) ଖବର କାଗଜ ବିବରଣୀ

ଯଦି ଘଟଣାଟି (ଜଳପ୍ରଦୂଷଣ) ଖବରକାଗଜରେ ପ୍ରକାଶିତ ହୋଇଥାଏ ତେବେ ଏହା ଅଭିଯୋଗକୁ ମଜବୁତ୍ କରିବା ପାଇଁ ଏକ ଅତିରିକ୍ତ ପ୍ରମାଣ । ଖବର କାଗଜରେ ପ୍ରକାଶିତ ଲେଖାଟିକୁ ପ୍ରମାଣ ରୂପେ ବ୍ୟବହାର କରିବା ପୂର୍ବରୁ ଏହା ସତ୍ୟ ଓ ଏହାର ସତ୍ୟାପନକୁ ସୁନିଶ୍ଚିତ କରିବା ଉଚିତ୍ ।

# II. ଅଭିଯୋଗ ପ୍ରସ୍ତୁତ ପ୍ରଣାଳୀ



## କେତେବେଳେ ଅଭିଯୋଗ ଦାଖଲ କରାଯାଇପାରିବ?

ଅଭିଯୋଗ ଦାଖଲ ନିମ୍ନଲିଖିତ ପରିସ୍ଥିତି ଉପୁଜିଲେ କରାଯାଇପାରେ ।

- ଯଦି ଶିଳ୍ପ/ ପ୍ରକଳ୍ପ ପ୍ରତିଷ୍ଠା ପାଇଁ ଅନୁମତି ନିଆଯାଇ ନଥାଏ
- ନିର୍ଦ୍ଧାରିତ ସର୍ତ୍ତର ଉଲଙ୍ଘନ ହୋଇଥାଏ
- ପୂର୍ବ ଅନୁଚ୍ଛେଦରେ ଦର୍ଶାଯାଇଥିବା ଆଇନ୍ ପ୍ରାବଧାନର ଉଲଙ୍ଘନ ହୋଇଥାଏ



## ଅଭିଯୋଗର ବିଷୟବସ୍ତୁ କଣ ହେବ?

- କେଉଁ ପ୍ରକାରର ଉଲଙ୍ଘନ
- ନିକଟରେ ବସବାସ କରୁଥିବା ଜନ ସାଧାରଣଙ୍କର ଉପରେ ସର୍ତ୍ତ ଉଲଙ୍ଘନର ପ୍ରଭାବ
- ସହାୟକ ପ୍ରମାଣ
- କିଭଳି ପ୍ରତିକାର ଆଶା କରାଯାଉଅଛି ।

# ଅଭିଯୋଗ କେଉଁ କର୍ତ୍ତୃପକ୍ଷଙ୍କ ଠାରେ ଦାଖଲ କରାଯିବ ?

| | |
|---|---|
| **ବେଆଇନ୍ ଭୂଜଳ ବ୍ୟବହାର** | କେନ୍ଦ୍ରୀୟ ଭୂଜଳ କର୍ତ୍ତୃପକ୍ଷଙ୍କର ଆଞ୍ଚଳିକ କାର୍ଯ୍ୟାଳୟ |
| **ଭୂଜଳ ସମ୍ବନ୍ଧୀୟ ନୋ-ଅବଜେକସନ୍ ସାର୍ଟିଫିକେଟର ସର୍ତ୍ତପାଳନର ଖିଲାପି** | ଜିଲ୍ଲା କଲେକ୍ଟର |

## WHAT ARE THE AVAILABLE REMEDIES?

| ପରିସ୍ଥିତି | ଉପଲବ୍ଧ ପ୍ରତିକାର |
|---|---|
| ଭୂଜଳ ବିଷୟକ ଯେ- ଅବ୍‌ଜେକସନ୍ ସାର୍ଟିଫିକେଟର ଦିଆଯାଇଥିବା ସର୍ତ୍ତର ଖିଲାପି | • ମାର୍ଗଦର୍ଶୀକାରେ ବର୍ଣ୍ଣିତ ଉଭୟ ବିଜ୍ଞାପିତ ଅଞ୍ଚଳ ଓ ଅଣବିଜ୍ଞାପିତ ଅଞ୍ଚଳରେ ଦିଆଯାଇଥିବା ନୋ- ଅବ୍‌ଜେକସନ୍ ସାର୍ଟିଫିକେଟର ପ୍ରତ୍ୟାହାର କିମ୍ବା ନବୀକରଣ ବାତିଲ |
| ଜରୁରୀ (ଯଦି ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ ଅନୁଭବ କରେ ଯେ ବିଷାକ୍ତ, କ୍ଷତିକାରକ କିମ୍ବା ଦୂଷିତ ଦ୍ରବ୍ୟର ନିର୍ଗମନ ଯୋଗୁଁ ଉକ୍ତ ପଦାର୍ଥ ଜଳପ୍ରବାହ, କୂପ କିମ୍ବା ଭୂଖଣ୍ଡରେ ଅବସ୍ଥିତ କିମ୍ବା ଅପରିକଳ୍ପିତ କାର୍ଯ୍ୟ ବା ଘଟଣା ଯୋଗୁଁ ଏହା ଦଳପ୍ରବାହ କିମ୍ବା କୂପ ମଧ୍ୟକୁ ପ୍ରବେଶ କରିଛି ଏବଂ ଯଦି ବୋର୍ଡ ତୁରନ୍ତ ପଦକ୍ଷେପ ନେବାର ଆବଶ୍ୟକତା ଉପଲବ୍ଧି କରେ) | • ବିଷାକ୍ତ, କ୍ଷତିକାରକ କିମ୍ବା ଦୁଷିତ ଦ୍ରବ୍ୟକୁ ଜଳପ୍ରବାହ କିମ୍ବା କୂପଜଳରୁ ଅଲଗା କରିବା<br>• ଉକ୍ତ ଦ୍ରବ୍ୟ ଯୋଗୁଁ ହୋଇଥିବା ପ୍ରଦୂଷଣର ପ୍ରତିକାର କିମ୍ବା ଉପଚାର<br>• ପ୍ରଦୂଷଣ ସୃଷ୍ଟି କରିଥିବା ବ୍ୟକ୍ତିକୁ ଉକ୍ତ ହାନିକାରକ ଦ୍ରବ୍ୟ ନିର୍ଗମନ କରିବାରୁ ବିରତ କରିବା କିମ୍ବା ନିଷେଧ କରିବା ପାଇଁ ଆଦେଶ ଜାରି |
| ସର୍ବସାଧାରଣ ଉତ୍ପୀଡ଼ନ | ଜିଲ୍ଲା କଲେକ୍ଟରଙ୍କ ଦ୍ୱାରା ଆଦେଶନାମା ଜାରି |
| ସମ୍ମତି ବିନା ପ୍ରକଳ୍ପ କାର୍ଯ୍ୟକାରୀ ହେଉଥିଲେ | ପ୍ରକଳ୍ପର କାର୍ଯ୍ୟଶୈଳୀ ବାବଦରେ ନିର୍ଦ୍ଦିଷ୍ଟ ସର୍ତ୍ତ ଉଲ୍ଲେଖ କରାଯାଇ ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ ଦ୍ୱାରା ନୋଟିସ୍ ପ୍ରେରଣ । |
| ସମ୍ମତିପତ୍ରରେ ଦର୍ଶାଯାଇଥିବା ସର୍ତ୍ତାବଳୀର ଅନୁପାଳନ ନ ହେଉଥିଲେ | • ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡଦ୍ୱାରା କାରଣ ଦର୍ଶାଅ ନୋଟିସ୍ ଜାରି<br>• ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ ଦ୍ୱାରା କାର୍ଯ୍ୟବନ୍ଦ ପାଇଁ ଆଦେଶ |
| କାରଣ ଦର୍ଶାଅ ନୋଟିସର ଉତ୍ତର ନ ମିଳିଲେ/ କାରଣ ଦର୍ଶାଅ ନୋଟିସ୍ ଉତ୍ତରରେ ଦିଆଯାଇଥିବା ପ୍ରତିଶ୍ରୁତିର ଖିଲାପ ହେଲେ | • ପ୍ରଦୂଷଣ ସୃଷ୍ଟି କରୁଥିବା କାର୍ଯ୍ୟକୁ ବନ୍ଦ କରିବା, ଏହାକୁ ନିଷେଧ କରିବା କିମ୍ବା ନିୟନ୍ତ୍ରଣ କରିବା<br>• ଜଳ ଯୋଗାଣ, ବିଦ୍ୟୁତ୍ ଯୋଗାଣ ବା ସେପରି ଅନ୍ୟ ସୁବିଧା ବନ୍ଦ କରିବା |
| ଜଳ ଅଧିନିୟମ ଅନୁଯାୟୀ ଜାରି କରାଯାଇଥିବା ନିର୍ଦ୍ଦେଶକୁ ପାଳନ କରିବାରେ ବିଫଳତା | ଜେଲଦଣ୍ଡ କିମ୍ବା/ ଏବଂ ଜୋରିମନା |
| ପରିବେଶ ମଞ୍ଜୁରୀରେ ଦର୍ଶାଯାଇଥିବା ସର୍ତ୍ତାବଳୀ ପାଳନରେ ବିଫଳତା | • ପରିବେଶ ସୁରକ୍ଷା ଆଇନ୍, ୧୯୮୬ ଅନୁଯାୟୀ ଜେଲଦଣ୍ଡ କିମ୍ବା/ ଏବଂ ଜୋରିମନା ଯାହାକି ୫ ବର୍ଷ କାରାବାସ କିମ୍ବା ୧ ଲକ୍ଷ ଟଙ୍କା ଜରିମନା କିମ୍ବା ଉଭୟ ଜେଲଦଣ୍ଡ ଓ ଜୋରିମନା<br>• ସର୍ତ୍ତାବଳୀ ପାଳନ ନ ହେବା ଯୋଗୁଁ ପରିବେଶ ମଞ୍ଜୁରୀ ପ୍ରତ୍ୟାହାର |

Disclaimer: Due to notification of draft guidelines on 11.10.2017, the above is subject to certain changes.

# ସେଣ୍ଟର ଫାର ପଲିସି ରିସର୍ଚ୍ଚ ସମ୍ବନ୍ଧରେ

ସେଣ୍ଟର ଫାର ପଲିସି ରିସର୍ଚ୍ଚ (ସି.ପି.ଆର) ଭାରତ ବର୍ଷରେ ୧୯୭୩ ମସିହା ଠାରୁ ସାର୍ବଜନୀକ ନିତି ଉପରେ ପ୍ରବୃଦ୍ଧ ବିଶେଷଜ୍ଞ ମାନଙ୍କ ସମୂହ ଅଟେ । ଏହା ଏକ ଅଣ ଲାଭଜନିକ, ସତନ୍ତ୍ର ସଂସ୍ଥା ଯାହାକି ଭାରତରେ ଜୀବିକାକୁ ପ୍ରଭାବିତ କରିବା ଢାଂଚା ଏବଂ ପ୍ରକ୍ରିୟା ଉପରେ ସାର୍ବଜନିକ ଚର୍ଚ୍ଚା ପାଇଁ ଯୋଗଦାନ ଉପରେ ଅନୁଧ୍ୟାନ ଉପରେ ସମର୍ପିତ ଅଟେ ।

**www.cprindia.org**

# ନମତି ସମ୍ବନ୍ଧରେ

ଏହା ଏପରି ଏକ ବିଶ୍ୱ ଯେଉଁ ଠାରେ କି କୋଟି କୋଟି ଲୋକଙ୍କୁ କାନୁନର ସୁରକ୍ଷା ମିଳି ପାରୁନାହିଁ । ନମତି ଏପରି ଏକ ସଂସ୍ଥା ଯିଏକି ଏହି ସାଧାରଣ ଲୋକଙ୍କ ହାତରେ କାନୁନ ଦେବାଲାଗି ସର୍ବଦା ତତ୍ପର ହେଉଅଛି । ଏହା କ୍ଷେତ୍ରସ୍ତରୀୟ କାମ କରୁଥିବା କାନୁନ ପେଶାଦାରମାନଙ୍କୁ ନେଇ ଏକ ସାମୁହିକ ଆନ୍ଦୋଳନ କରିବା ପାଇଁ ପ୍ରସ୍ତୁତ ହେଉଅଛି, ଯେଉଁ ମାନେ କି ସ୍ଥାନୀୟ ଜନସାଧାରଣଙ୍କ ସହ ମିଳି ନ୍ୟାୟ ପ୍ରଦାନ କରିବାର କାଯ୍ୟ କରୁଅଛି । ଏହି କ୍ଷେତ୍ର ସ୍ତରୀୟ ପେଶାଦାର ମାନେ ଆଗଭର ହୋଇ ସଂଘର୍ଷ କରୁଅଛନ୍ତି ଯେଉଁଥିପାଇଁ କି ସ୍ଥାନୀୟ ଲୋକ ନିଜ ନିଜର ଜମିକୁ ବଂଚାଇବ ପାରିବେ, ଆବଶ୍ୟକିୟ ସେବା ପାଇ ପାରିବେ ଆଉ ତା ସହିତ ସେମାନଙ୍କ ଜୀବନ ଜୀବିକା କୁ ପ୍ରଭାବିତ କରୁଥିବା ସେ ସମସ୍ତ କର୍ଯ୍ୟରେ ନିଆଯାଉଥିବା ନିର୍ଣ୍ଣୟରେ ଭାଗିଦାରୀ ହୋଇପାରିବେ ।

**www.namati.org**

CENTRE FOR POLICY RESEARCH

NAMATI
INNOVATIONS IN LEGAL EMPOWERMENT